# କର୍ମସଙ୍ଗୀତ

ପ୍ରଥମ ଓ ଦ୍ୱିତୀୟ ଭାଗ



ରାୟ୍ ବାହାଦୂର ଭିକାରୀଚରଣ ପଟ୍ଟନାୟକ

# କର୍ମସଙ୍ଗୀତ

ପ୍ରଥମ ଓ ଦ୍ୱିତୀୟ ଭାଗ

ରାୟ୍ ବାହାଦୁର ଭିକାରୀଚରଣ ପଟ୍ଟନାୟକଙ୍କ
ପ୍ରଣୀତ

ଶ୍ରୀ ରଘୁନାଥ ପଟ୍ଟନାୟକଙ୍କ ଦ୍ୱାରା
ପ୍ରକାଶିତ

ପ୍ରଥମ ସଂସ୍କରଣ

**Printed by P. Kar**
THE UTKAL SAHITYA PRESS,
**CUTTACK.**
**1940**

ମୂଲ୍ୟ ୵ ୦ । ଚାରିଅଣା ମାତ୍ର

# ପ୍ରଥମ ଭାଗ

## ସୂଚୀ

# କର୍ମ-ସଙ୍ଗୀତ

## ୧ । ତାଳପତ୍ରର



( କୁଅଁ ରପୁନେଇ ଗୀତ ସ୍ୱରରେ ଗାଇବ । )

ତାଳପତ୍ରରର ଗୁଣ
ଯେତେ ଗାଇଲେ ତ ସରଇ ନାହିଁ ଗୋ
ବଢ଼ିଯାଏ ପୁଣ ପୁଣ ।
ବିଧାତା ଗଢ଼ିଛୁ ତାକୁ
କେତେ ଭଲ ଭଲ ଆମର ପାଇଁ ଗୋ
ହାତକାମ ଶିଖିବାକୁ ।

ଛାଳପଥର ନ ଥାନ୍ତା
କଏ କାହୁଁ କହ କେତେ ଦରବ ଗୋ
ଆମକୁ ଅଣି ଯୋଗାନ୍ତା ।
ଛାଲଚଛି ସବୁଠାରେ
ଆମର ପାଇଁକ ସିନା ଉଠୁଛୁ ଗୋ
ବାଡ଼ରେ ବଣ ବୁଦାରେ ।
କଉଡ଼ ନ ଗଣି କାହିଁ
ଅଣୁଛେଁ ପଥର ଆମେ ଗୋଠାଇ ଗୋ
ଖାଲି ଖାଲି ଧାଇଁ ଯାଇ ।
ପଥରଶରାଟି ଆଗ
ନ ହେଲେ ନା ହେବ କିଛୁ ସୁନ୍ଦର ଗୋ
ପଥର ଗୁଡ଼ିକ ବାଗ ।
ସିଧା କର ଶରବାକୁ
ଇକାର ବାବୁଙ୍କ 'ପଥର କଥା' ଗୋ
ଠିକଣା ହୋଇଛୁ ତାକୁ ।



ପାଦରେ ଧରିବ ମାଡ଼ି
ଏପାଖେ ପଥର ଦେଇ ସେପାଖେ ଗୋ
ଟାଣି ନେଉଥିବ କାଢ଼ି ।

ଧନକେ ନ ହେବ ଯେତେ
ପତର କଣ୍ଟା'ରେ ଘଡ଼କେ ସିନା ଗୋ
ଶର ହୋଇଯିବ ତେତେ ।
ପହିଲେ ପତର ପଟି
ନାନା ପରକାରେ ଶିଖି ପାରିବ ଗୋ
ଧନ ଦୁଇଟାରେ ଖଟି ।
ପଟିବୁଣା ବଡ଼ ସଜ
ଢନୋଟି ଶାଖାରେ ଜାଣନ୍ତି ସବୁ ଗୋ
ଗୃର ଶାଖାରେ ଅସଜ ।
କଲାପଟି ବଡ଼ ଭଡ଼
ନ ଶିଖିଲେ ତାକୁ କିଏ ବୁଣିବ ଗୋ
କହିଲେ ପଚ୍ଛକେ ଶଢ଼ ।
କଲାପଟି ଯୋଡ଼ି ଯୋଡ଼ି
ବେଗ୍‌ଠାରୁ ଟୋପି ସାହାବ ଟୋପି ଗୋ
ବୁଣିବ ଛୁଞ୍ଚିରେ ଫୋଡ଼ି ।
ହାତପଙ୍ଖା ସେହିପରି
ହେବଟି ତହିଁରେ ଅତି ସୁନ୍ଦର ଗୋ
ବାନ୍ଧିହେବ ବେଣ୍ଟ ଧରି ।
ପଟିବୁଣା ପରେ ପରେ
ଚଟେଇ ବୁଣିବ ନାନା ଜାତିରେ ଗୋ
ସେ ତ ଲୋଡ଼ା ସବୁ ଘରେ ।
ପୁଣି ଏ ତାଳପତର
ପୁରଦେଇ ଯେବେ ବୁଣିବ ପେଡ଼ି ଗୋ
ହେବ ସେ କେଡ଼େ ସୁନ୍ଦର ।

ଗୃଙ୍ଗୁଡ଼ଟି ଗୁଣିଥିଲେ

ଖଇ ମୁଢ଼ି ଚୂଡ଼ା ବେଶି ମଧୁର ଗୋ
ଗୁଙ୍ଗୁଡ଼ରେ ପୁରାଇଲେ ।
ଫଡ଼ୁଅରେ ଅଲଙ୍କାର
ରଖି ଦେଇଥିଲେ ଝିଅଙ୍କୁ ଥିବ ଗୋ
କାଳେ କାଳେ ଜୋତ ତାର ।
ତାଳ ପତରରେ ଥରେ
ହାତ ଦେଇଗଲେ ଯାହା ଧରିବ ଗୋ
ତାହା ଗୁଣି ହେବ ପରେ ।
ତାଳଗଛ ପରି ଗଛ
ଯେତେ ଯହିଁ ଖୋଜ ଆଉ ତ ନାହିଁ ଗୋ
ଆଉ ସବୁ ତାହା ପଛ ।
କେଡ଼େ ମଜା ତାଳପିଠା
ତାଳସଜ ଠାରୁ ପାଚିଲା ଯାଏ ଗୋ
ଫଳ ତାର ବଡ଼ ମିଠା ।
ପୁଣି ଏବେ ତାଳରସ
ନିଗାଡ଼ି ରାନ୍ଧିଲେ ହେଉଛି ଗୁଡ଼ ଗୋ
ସେ ଗୁଡ଼ ଅତି ସରସ ।
କୋଉଠି ଗୁଣ ତ ଜାଣି
ଯେତେ ଯେତେ କାମ ହୁଏ ତହିଁରେ ଗୋ
ସବୁଥିରେ ଏହା ଠାଣି ।
ତାଳହିମିଠିକୁ ବଳି
ଏଡ଼େ ଠାଣି ଏଡ଼େ ଚିକ୍କଣ ପୁଣି ଗୋ
ଆଉ ନାହିଁ ତାହା ଭଳି ।

ତାଳ ଶେଣୀ ଯେଉଁ ଘରେ
ଲଗିଥିବ ଜାଣ ଅଯୂଷ ତାର ଗୋ
ନ ପୂରିବ ଏ ଯୁଗରେ ।
ତାଳଗଛ ଗୋଟିଯାକ
ତଳେ ନାହିଁ କାହିଁ ଣୀ ଅଧିକେ ଗୋ
(ସେ ତ) ସୁବର୍ଣ୍ଣର ଥାକ ଥାକ ।
ତାଳଗଛ ବଢୁଥାଉ
ତାଳଗଛ ଶିରେ ଶୁଭ ବରଷୁ ଗୋ
ଫଳ ଅମେ ପାଉଥାଉଁ ।

---

## ୨ । କୁଣ୍ଠା



( କୁଆଁରପୁନେଇ ଗୀତ ସ୍ବରରେ ଗାଇବ )

କୁଣ୍ଠା କେର କେର ଧର ଲୋ ଭଉଣୀ !
କୁଣ୍ଠା କେର କେର ଧର,
ପଥର ଖୋଲପା ଭୂଇଁ ପକାଇଲେ
ଶୀଁ ଷାଠି କେଡ଼େ ସୁନ୍ଦର ।
ଗୃହେଟି ଶାଖାରେ ପଡି ଲୋ ଭଉଣୀ
ଗୃହେଟି ଶାଖାରେ ପଡି,
ଗୃହ୍ଣଂ ଗୃହ୍ଣଂ ବୁଣିଦେବା ଏହିକ୍ଷଣି
ନ ଯିବା ଏଥିକ ହଟି ।

ଛୁଞ୍ଚିରେ ଫୋଡ଼ ସିଇଁବ ଲୋ ଭଉଣୀ
ଛୁଞ୍ଚିରେ ଫୋଡ଼ି ସିଇଁବ,
କୁଣ୍ଠା ଧାରେ ଧାରେ ସୂତା ବସାଇବ
ଉପରେ କିଛି ନ ଥିବ ।
ବେଗ୍‌ଟିଏ ବୁଣିଦେଲେ ଲୋ ଭଉଣୀ
ବେଗ୍‌ଟିଏ ବୁଣିଦେଲେ,
ଠାଣିମାଣି ରଙ୍ଗ ରୂପ ଦେଖି ତାର
ସକଳେ ଭୁଲିବେ ହେଲେ ।
ହାତକାଉଶଳ ଏହ୍ନ ଲୋ ଭଉଣୀ
ହାତ କଉଶଳ ଏହ୍ନ,
କରିଦେଇଥିଲେ ଧରି ନ ପାରିବେ
ପାଲକୁଣ୍ଠା ବୋଲି କେହ୍ନ ।

---

## ୩ । କାଉଁଚ



( କୁଅଁରପୁନେଇ ଗୀତ ସ୍ୱରରେ ଗାଇବ )

ବରଷା ଶେଷ ବେଳରେ,
କାଇଁଚ ପାକଲ ହୁଏ ବାଲରେ
ହୁଏ ବାଲରେ ଗୋ,
ଅଣି ଥୋଇଦେଇଥିବ ଘରେ, ଭଉଣୀ ଗୋ । ୧ ।
ଚୂଣାଚୂର୍ଣ କରିବାକୁ,
କଖା ଆଉଁ ଶର ଥୋଇବ ତାକୁ
ଥୋଇବ ତାକୁ ଗୋ,
ପଛେ ହଗବର ଶରବାକୁ, ଭଉଣୀ ଗୋ । ୨ ।
ଅମ ଦେଶରେ ଏ ଘାସ,
କେହି ନ କରନ୍ତି ଏହାକୁ ଖୁଷ
ଏହାକୁ ଖୁଷ ଗୋ,
ଏ ତ ଦୁଃଖୀରଙ୍କୀଙ୍କର ଅଶ, ଭଉଣୀ ଗୋ । ୩ ।

ଡାଳଟିଏ କାଇଁଚରେ,
ବୁଣି ଦେଲେ ଖଞ୍ଜି କଳାରଙ୍ଗରେ
କଳାରଙ୍ଗରେ **ଗୋ,**
କିଏ ନ ଚାହିଁବ ଫେର ଥରେ, ଭଉଣୀ ଗୋ । ୪ ।
କାଇଁଚ ଗୁଙ୍ଗୁଡ଼ ଯାଇ,
ଦୂର ବିଦେଶରେ ସିନା ବିକାଇ
ସିନା ବିକାଇ ଗୋ,
ଟାଣିଆଣେ ଧନ ଆମ ପାଇଁ, ଭଉଣୀ ଗୋ । ୫ ।
କାଇଁଚ ରୂପକୁ ଚାହିଁ,
କାହା **ଆଖି** କହ ଭୁଲି ନ ଯାଇ
ଭୁଲି ନ ଯାଇ ଗୋ,
ନ ପାଇଲେ ମନ ହାଇଁ ପାଇଁ, ଭଉଣୀ ଗୋ । ୬ ।
ଆମ ଏ ଦୁଃଖୀ ଦେଶରେ,
ବହୁ ଖଞ୍ଜିଛନ୍ତି କେତେ ରୂପରେ
କେତେ ରୂପରେ ଗୋ,
ଖଟି ଖାଇବାପାଇଁ ସୁଖ ରେ, ଭଉଣୀ ଗୋ । ୭ ।
ବସି ଯେ ଖଟିବ ନାହିଁ
କିଏ କାହୁଁ କେତେ କହ ତା ପାଇଁ
କହ ତା ପାଇଁ ଗୋ,
ଆଣିଦେବ ତା ପାଶେ ଖଞ୍ଜାଇ, ଭଉଣୀ ଗୋ । ୮ ।
ଭୋକ ଉପାସରେ ମରୁଁ,
କାଇଁଚ ଗୋଟାଇ ଡାଲା ନ କରୁଁ
ଡାଲା ନ କରୁଁ ଗୋ,
ଦଣ୍ଡେ କାମ କରିବାକୁ ଡରୁଁ, ଭଉଣୀ ଗୋ । ୯ ।

ଘୋଳେ ବୁଜ ବସୁଁ ପାଠି,
ପାଟରେ କାଇଁ ଚ ହୁଅଇ ମାଟି
ହୁଅଇ ମାଟି ଗୋ,
ଅମେ ସେତକ ନ ଅଣୁ କାଟି, ଭଉଣୀ ଗୋ । ୧୦ ।
କାଇଁ ଚ ପେଢ଼ ବୁଣନ୍ତ,
ଅସନ୍ତା କଉଡ଼ କେତେ ଦେଖନ୍ତ
କେତେ ଦେଖନ୍ତ ଗୋ
ଖାଲ୍ ବସି ହୁଅ ହନ୍ତସନ୍ତ, ଭଉଣୀ ଗୋ । ୧୧ ।
ପେଟକୁ ଦାନା ନ ଥାଇ,
ଉପରକୁ ଖାଲ୍ ବସିଲେ ଗୁହିଁ
ବସିଲେ ଗୁହିଁ ଗୋ,
କଏ ପାଟିରେ ଦେବ ପୁରାଇ ଭଉଣୀ ଗୋ ।୧୨।
ବିଧାତା ଦେଇଛୁ ଗଞ୍ଜି,
କାଇଁ ଚ ଉଠୁଛୁ ନ ପୋତ ମଞ୍ଜି
ନ ପୋତ ମଞ୍ଜି ଗୋ,
ଅଳସରେ ହେଉଅଛ ଚଞ୍ଜି, ଭଉଣୀ ଗୋ । ୧୩ ।
ବିଧାତାକୁ ଦେବ ଦୋଷ,
ନ ପିଇବ ପାଣି ମାରବ ଶୋଷ
ମାରବ ଶୋଷ ଗୋ,
ଏବେ କାହାକୁ କରବ ରୋଷ, ଭଉଣୀ ଗୋ । ୧୪ ।
ବୁଣିବ ଯେବେ କାଇଁ ଚ,
ବାଜଦେବ ମାପି ଇଞ୍ଚିକୁ ଇଞ୍ଚ
ଇଞ୍ଚିକୁ ଇଞ୍ଚ ଗୋ
ହାତେ ପିନ୍ଧିବ ସୁନା ପଇଞ୍ଚି, ଭଉଣୀ ଗୋ ।୧୫।

## ୪ । କଅା



( ସ୍ୱଗ-ମଙ୍ଗଳ )

ବିଧାତା ଦେଇଛୁ ଯାହା
ଅମର ହାତ ପାଖରେ,
ହାତେ ଧରି ଖେଳାଇଲେ
ଖେଳିବ ଧନ ହାତରେ; ସମ୍ପଦ ହାତରେ ।
କଅବୁଦା ପଣି ପଣି
ମାଡ଼ଇ ଦାଣ୍ଡ ଅଗରେ,
ନ ବୁଝୁଛ କି ରତନ
ଫଳଇ ସେହି ଗଛରେ; ସେ କଅ ଗଛରେ ।
ଶୁଖିଗଲେ ତା ପତର
ଗୋଡାର ଚୁଲ୍ଲୀମୁହଁରେ,
ନ ଭୁଲି ଦେଖିଛ ଜାଲି
କେତେ ଧନ ସେତିକରେ; ସେ କଅ ପତରେ ।

କଅଁା ଥାଉଁ ଥାଉଁ ଯେବେ
କାଟିଆଣି ଯତନରେ,
ଖର ଦେଉଥାନ୍ତ ବସି
ତାଳଗିର ଖଣ୍ଡିକରେ; (କବା) ଖଜୁର ଖିରରେ ।
ଖଣ୍ଡ ପଥର ଗୁଣ୍ଡିକ
ଖାଲ୍ ଗରମ ଜଳରେ,
ସିଝାଇ ପକାନ୍ତ ବସି
ଗୁହୁଁ ଗୁହୁଁ ଦଣ୍ଡକରେ; ଦଣ୍ଡକ ଭିତରେ ।
ଖରାଟରେ ଶୁଖାଇ ଖାଲ
ରଙ୍ଗ ଦେଇଥାନ୍ତ ଘରେ,
ନଖଟରେ ଫିଟାନ୍ତ ବସି
କାମ ନ ଥିବା ବେଳରେ; ବସିଲ ବେଳରେ ।
ବୁଣାନ୍ତ ଚଟେଇ ଖଣ୍ଡେ
ଯେବେ ସେହୁ ସେଡକରେ,
ଦେଖାନ୍ତ କେଡ଼େ ସୁନ୍ଦର
ହୁଅନ୍ତା ତମ ହାତରେ; ଉମର ହାତରେ ।
କଜଡ଼ କଜଡ଼ ଗୁଣି
ହେଉଛ ମନ୍‌ଭିତରେ,
କଜଡ଼ ଅସିବା ବାଟ
ନ ଧରୁଛ କପାଁ ଥରେ;ନ ଭଲ ମନରେ ।
କାଅପତରକୁ ଚୁଛି
କରୁଛ ସିନା ଚୁଛାରେ,
ଶୋଇଲେ ମୋହ୍ବ ମନ
କାଅ ଚଟେଇରେ ଥରେ; ଚଟେଇ ଉପରେ ।

କଅଗଛ ସୁନାଗଛ
ସୁନା ଫଳେ ସେ ଗଛରେ,
ତାକୁ ସେବା କଲେ ଦୁଃଖ
ହରଯିବ ସହଜରେ;(ଦୁଃଖ) ହରବ ସଜରେ ।
କଅଟେର ଲର କର
ବାନ୍ଧୁଛ ଘରଗୃଳରେ,
ଆଉ କେତେ ଜାତ କାମ
ହେବ ତହିଁ ଅଳପରେ; ହେବ ତା ଠେରରେ ।
କଅଫୁଲ ସୁଙ୍ଗ ଫିଙ୍ଗି
ଦେଉଛ ଯାହା ଶେଷରେ,
କେତେ ଧନ ହେବ କଲେ
ଅତର ସେହୁ ଫୁଲରେ; କେଉଡ଼ା ଜଳରେ ।
କଅଗଛ ଠଙ୍କାଗଛ
ଠଙ୍କା ଗୋଠିକ ଯାକରେ,
ଝଡ଼ାଇ ଜାଣିଲେ ଠଙ୍କା
ଝଡ଼ୁଥିବ ସହଜରେ; ଝଡ଼ିବ ସଜରେ ।
ବୁଝ ହେଜ ମନ ଦେଇ
ଧନ ଭମର ପାଖରେ,
ଦେହ ନ ଗଞ୍ଜିଲେ ଧନ
ଧର ନ ପଡ଼େ ହାତରେ; ନ ପଡ଼େ ହାତରେ ।

———

## ୫ । ଗାଲିଚ୍ଛ



( ଫୁଲବଉଲ ବଣୀ—ବୃତ୍ତିରେ ଗାଇବ । )

ଗାଲିଚ୍ଛ ବୁଣିବ ଆସ ଗୋ ବୋହୂ ମେଣ୍ଢାବାଳରେ,
ଗାଲିଚ୍ଛ ବୁଣିବ ଆସ ଲୋ ଝିଅ ମେଣ୍ଢାବାଳରେ ।
କାହୁଁ ଆସୁଥିଲ ଗୁହିଁ ଦେଖୁଥିଲ
ଏବେ ତ ଆମ ହାତରେ ଗୋ
ବୁଣି ମେଣ୍ଢାବାଳରେ ।
ଫଲ ପଲ ହୋଇ ମେଣ୍ଢା ବୁଲୁଛନ୍ତି
ତାଙ୍କର ସେହି ଲୋମରେ ଗୋ,
ସେହି ମେଣ୍ଢା ଲୋମରେ ।

ଗାଲିଚ୍ଛ ବୁଣିବ    କମ୍ବଳ ବୁଣିବ,
ଦେଖିନେଲେ ଖାଲି ଥରେ ଗୋ,
ଖାଲି ଦେଖିଲେ ଥରେ ।
ଟାଣୀ ଭରଣୀକ    ବଳ ଝୋଟବାଣି
ଝୋଟ ତ ଅମ ଦେଶରେ ଗୋ,
ଝୋଟ ଅମ ଦେଶରେ ।
ମେଣ୍ଢାବାଳ କାଟି    ଆଣି ସଫା କର
ସୁତା କାଟ ଅବଟରେ ଗୋ,
ସୁତା କାଟ ହାତରେ ।
ତତଲା ପାଣିରେ    ରଙ୍ଗ ଗୋଳି ତାକୁ
ରଙ୍ଗ କର ନିଜ ଘରେ ଗୋ,
ରଙ୍ଗ କରିବ ଘରେ ।
ଗଣ୍ଠି ଦେଇ ଦେଇ    ବୁଣିବ ଗାଲିଚ୍ଛ
ମିଳାଇ ରଙ୍ଗ ରଙ୍ଗ ରେ ଗୋ,
ବୁଣ ନାନା ରଙ୍ଗରେ ।
ଯେମନ୍ତେ ପାଞ୍ଚିବ    ତେମନ୍ତେ ବୁଣିବ
କମ କୁଟ ତା ଭିତରେ ଗୋ,
କମ କୁଟ ଭିତରେ ।
ଭିକାରି ବାବୁଙ୍କ    ଗାଲିଚ୍ଛ କଟାଟି
ହେବ ତ ପଇସା କରେ ଗୋ,
ହେବ ପଇସା କରେ ।
ଠଙ୍କାଇଅ ଲୁସି    ପାସଙ୍ଗେ ନ ପଡ଼
ହଟିବ ତାହାପାଖରେ ଗୋ,
କାହିଁ ତାହା ପାଖରେ ।

ହାତ ଫରମାରେ ଅସନରେ ହାତ
ସଜାଡ଼ି ନାଅ ଅଗରେ ଗୋ,
ସାଧି ନାଅ ଅଗରେ ।
ଗୁଳରୁ ଝୁଲଇ ବଡ଼ ବଡ଼ ପୁଣି
ବୁଣିବ ତହିଁ ପଛରେ ଗୋ,
ବୁଣ ତହିଁ ପଛରେ ।
ଅଙ୍ଗ ଠିର ଖେଳ ଅଙ୍ଗୁଠି ଚଳାଇ
ଜାଣିବ ଯେତେ ବେଗରେ ଗୋ,
ପାର ଯେତେ ବେଗରେ ।
ସେତକ ସୁନ୍ଦର ହେବ ସିନା କାମ
ବିକାଇବ ବଜାରରେ ଗୋ,
ବିକାଇବ ଦାଣ୍ଡରେ ।
ଯେତେ କମକୁଠ ଯହିଁ ଦେଖିଅଛ
ସବୁ ଏ ହାତ ଗୁଣରେ ଗୋ,
ସବୁ ହାତ ଗୁଣରେ ।
ମାଟି ଯେ ପାଲଟି ମାଣିକ ହୁଅଇ
ଏହି ହାତ ପରଶରେ ଗୋ,
ଖାଲି ହାତ ଗୁଣରେ ।

---

# ୬ । ସୁଆଁ ଲଇ



'( କୁଆଁ ରପୂନେଇ ଗୀତ ସ୍ୱରରେ ଗାଇବ )

କାଟିଗଲ ସୁଆଁ ଲଇ
ସୁଆଁ ଲଇ ପୁଣି ମାଡ଼ୁଛୁ ଏତେ ଗୋ
କାଟି କାଟି ନ ସରଇ ।
ଛଡ଼ାଇ ବସିଲ ତାକୁ
ଗ୍ରେପା ଛୁଡ଼ଗଲେ ସଫା ଧୋବଲ ଗୋ
ଭିତରଟି ଦେଖିବାକୁ ।
ବୁଣିଲେ ତହିଁରେ ଡାଲ
ଡାଲଟିଏ ହେବ ଏଡ଼େ ସୁନ୍ଦର ଗୋ
ଥୋଇବ ଦଅଙ୍କ ମାଳା ।
ବାଛୁ ବାଛୁ ସରୁ ଲଇ
ବୁଣି ଦେଇଥିଲେ 'ହାତ ଗୁଣରେ ଗୋ
ଆଖି ଲାଖିଯିବ ତହିଁ ।

ଯେଡ଼େ ଝାଣ ଲଇ ଗୁଡ଼
ଯାହା କଲେ ତାହା ହେବଟି ଝାଣ ଗୋ
ପାଣ୍ଟୁଅ ଠୋକେଇ ଝୁଣ୍ଡ଼ ।
ସୂଅଁ ଲଇ ଦେଇ ଯେବେ
ମାଞ୍ଜିଅ ଖୁରୁଟ ବୁଣି ପାରବ ଗୋ
ଧଣୀ ଲୋକେ କିଣିନେବେ ।
ରଙ୍ଗଟି ଯେଡ଼େ ସୁନ୍ଦର
ପୋଛେ ପାଲିସ୍‌ରେ ଚମକି ଯିବ ଗୋ
ରାଜଦରବାର ଘର ।
କେତେ ଲତା ଏହି ଭଳି
ବଣେ ବଣେ ମାଡ଼ି ଖାଲି ବଣରେ ଗୋ
ଯାଉନ୍ତି ଏମନ୍ତେ ଜଳି ।
ବାହି ସିନା ଏହିପରି
ଖଞ୍ଜି ଦେଇଛନ୍ତି କେତେ ସମ୍ପଦ୍ ଗୋ
ଦେଖୁଛ ଦୁନିଆ ଭରି ।
ସବୁ ତ ଆମରି ପାଇଁ
ଆମେ ଯେବେ ହାତ ବାନ୍ଧି ବସିବା ଗୋ
ଆମ ଦୁଃଖ ଯିବ କାହିଁ ?

---

## ୭ । ଏଣ୍ଡି



(ଫୁଲ ବଉଲବେଣୀ ବୃତ୍ତରେ ଗାଇବ)

ଭଙ୍କାର ବାବୁଙ୍କ ଏଣ୍ଡି ଗୋ,
ଫୁଲ ବଉଲବେଣୀ,
ଏଣ୍ଡି ପୋକ ପୋଷି ଗଦପଦ ଖୋଇ
ବସି ମାରୁଥିବ ହେଣ୍ଡି ଗୋ,
ଫୁଲ ବଉଲବେଣୀ ।୧।

ଅଠର ଦିନଟିପାଇଁ ଗୋ, ଫୂ: ବ: *
ଯାହା ଖୋଇଥିବ ଶେଷ ସେତିକରେ
ଆଉ ତ ପରେ ନ ଖାଇ ଗୋ, ଫୂ: ବ: । ୨ ।
ଅମୃତାଳ କଣ୍ଟୁ ଅଣି ଗୋ, ଫୂ: ବ:,
ଗୋଟି ଗୋଟି କରି ପାକଳ ପୋକଙ୍କୁ
ଛାଡ଼ିବ ତହିଁରେ ଜାଣି ଗୋ, ଫୂ: ବ: । ୩ ।
ପାହି ଗଲେ ଖାଲି ରାତି ଗୋ ଫୂ: ବ:,
ଦେଖିବ ସକାଳେ କୋଷା ପଣ ପଣ
କୁଣ୍ଡେ ମୋଟ ହେବ ଛତି ଗୋ, ଫୂ: ବ: । ୪ ।
ସାତଦିନେ କୋଷା କାଢ଼ି ଗୋ, ଫୂ: ବ:
ଗୋଟି ଗୋଟି କରି ଡାଲଟିରେ ନେଇ
ରଖିବ ତାକୁ ସଜାଡ଼ି ଗୋ, ଫୂ: ବ: । ୫ ।
ପିମ୍ପୁଡ଼ିଙ୍କୁ ଜଗିଥିବ ଗୋ, ଫୂ: ବ:,
କୋଷା ହେବା ପରେ ଅଠର ଦିନରେ
ପ୍ରଜାପତିଙ୍କୁ ଦେଖିବ ଗୋ ଫୂ: ବ: । ୬ ।
ପ୍ରଜାପତି ରୂପ ଗୃହିଁ ଗୋ, ଫୂ: ବ:,
କୋଷାରୁ ବାହାରି ଅସୁଥିବେ ଦେଖି
ସବୁ ଦୁଃଖ ଭୁଲି ଯାଇ ଗୋ, ଫୂ: ବ: । ୭
ଆଉ ସେ କଣ୍ଟୁ ନ ଖାନ୍ତି ଗୋ, ଫୂ: ବ:
ଅଣ୍ଡା ପଣ ପଣ ଦେଇସାରି ଖାଲି
ଅପେ ଅପେ ମରିଯାନ୍ତି ଗୋ, ଫୂ: ବ: । ୮ ।

---

* ଏଥିରେ 'ଫୂ ବ:' ଯେଉଁ ଜାଗାରେ ଲେଖା ଅଛି ସେଠାରେ "ଫୁଲ ବଉଳବେଣି" ବୋଲି ଗାଇବାକୁ ହେବ ।

ଅଣ୍ଡାକୁ ତୋଳ ରଖିବ ଗୋ, ଫୁ : ବ:
କନା ଖଣ୍ଡିକରେ ବାନ୍ଧ ରଖିଦେବ
ପାଞ୍ଚଦନେ ଫିଟାଇବ ଗୋ, ଫୁ : ବ:। ୯ ।
ଅଣ୍ଡା ପାଉଁଶିଆ ହେଲେ ଗୋ, ଫୁ : ବ:
ଜାଣିବ ଏଥର ସାତଦନ ଦନେ
ଅଣ୍ଡା ଫୁଟିଯିବେ ହେଲେ ଗୋ, ଫୁ : ବ: । ୧୦ ।
ବାହାରିବେ ପୋକ ଯେବେ ଗୋ, ଫୁ: ବ:,
କଅଁଳିଆ ଗଛ- ପତର ତାହାଙ୍କୁ
ଖାଇବାକୁ ଦେବ ତେବେ ଗୋ, ଫୁ: ବ: । ୧୧ ।
କୋଷାକୁ ଦେବ ସିଝାଇ ଗୋ, ଫୁ : ବ:
ପାଣି ହାଣ୍ଡିକରେ ନିଆଁରେ ବସାଇ
ତହିଁରେ ସୋଡ଼ା ମିଶାଇ ଗୋ, ଫୁ : ବ: । ୧୨ ।
ଏଣିକି ଅରଟ ଧର ଗୋ, ଫୁ : ବ:
କିବା ତାକୁଡ଼ିରେ ସୁତା କାଟି ଦେଲେ
ଯିବ ତା ମେହନ୍ତ ସର ଗୋ, ଫୁ : ବ: । ୧୩ ।
ତନ୍ତୀ ଘରେ ସୁତା ଦେଇ ଗୋ, ଫୁ : ବ:
ଯେଉଁ ଭଳି ଲୁଗା କହିବ ସେଭଳି
ବୁଣିବ ସେ ବାଣ ନେଇ ଗୋ, ଫୁ : ବ: । ୧୪ ।
ଏଣ୍ଡି ଲୁଗାର ଆଦର ଗୋ, ଫୁ : ବ:
ଦେଶ ବିଦେଶରେ ସମସ୍ତେ ଖୋଜନ୍ତି
ଦେଇ ତାକୁ ବେଶି ଦର ଗୋ, ଫୁ : ବ: । ୧୫ ।
ଏଣ୍ଡିପୋକ ପାଳ ଘରେ ଗୋ, ଫୁ : ବ:
ହାତେ ହାତେ ସିନା କଉଡ଼ି ଗଣିବ
ବସି ବସି ଆନନ୍ଦରେ ଗୋ, ଫୁ : ବ: । ୧୬ ।

ଏଣ୍ଡିପୋକ ଉପକାରୀ ଗୋ, ଫ୍ର: ବ:
ଗବପତ୍ର ଖାଇ ପାଟ ସୁତା ଦେବେ
ଦୁଃଖୀଙ୍କ ପୋଷଣାହାରୀ ଗୋ, ଫ୍ର: ବଃ । ୧୭ ।
ବିଧାତା ଭିଆଣ ଏହୁ ଗୋ, ଫ୍ର: ବ:
ଦୁଃଖୀଙ୍କ ପୋଷିବା ପାଇଁ ଏତେ କଥା
ଖଞ୍ଜିଛନ୍ତି ସିନା ସେହୁ ଗୋ, ଫ୍ର: ବଃ ।। ୧୮ ।

---

# ୮ । ଝୋଟ



( କୁଆଁ ରପୁନେଇ ଗୀତ ସ୍ୱରରେ ଗାଇବ )

କେତେ କେତେ କଳତା ଗୋ ଆମର ଦେଶରେ,
ଝୋଟ ହୋଇ କାହିଁ ଚୁଲ ଯାଉଛୁ ଶେଷରେ ।
ଆରମ୍ଭରୁ କଳତାରେ ଖଟଣି ଯେତକ
ହିସାବରେ ନ ମିଳଇ ମୂଲରେ ସେତକ ।
ଏହି ଝୋଟ ଚୁଲ୍‌ଯାଇ ପାଟ ନାମ ଧର
କେତେ ରୂପେ ଫେର୍‌ଆସି ନିଏ ଧନ ହର ।
ଆମ ଝୋଟ ଆମେ ଚିହ୍ନି ନ ପରୁଁ ତାହାକୁ
ଯାହା ପାଇ ଥାଉଁ, ସାତ ଗୁଣା ଦେଉଁ ତାକୁ ।
ପର ହାତ ଗୁଣେ ସିନା ହୋଇ ସେ ପରର
ବଳେ ବଳେ ଲୁଟି କରେ ଆସି ଆମ ଘର ।

ନ ଜାଣିବା ଦୋଷେ ଅବା ଯେତେ ଦେଉଥାଇଁ
ଯାହା ଜାଣୁ ତାହା ଭଲ ନ କରୁଁ କପାଇଁ ?
ବରଷରେ ଯେତେ ଦୋଷ ଯାଉଅଛୁ ଗୃହ
ଜାଣୁଛେଁ ତ ମିଳୁ ନାହିଁ ମୂଲଟିକ ଖାଲ୍ ।
ସେତକରୁ ବେଶି ଧନ କେମନ୍ତେ ମିଳିବ
ଏ ବଗୃର ଦନେ ହେଲେ କପାଁ ନ ଭାଳିବ ?
ବାଣି କାଟି ଦେଲେ ବସି ଟଙ୍କାକ ଜାଗାରେ
ଦୁଇ ଟଙ୍କା ହେବ ଏହା ଜାଣୁଛେଁ ଉଣାରେ ।
ବାଣି କଟା କାମ ଅବା କେଉଁ ଭଡ଼ କଥା
କାହିଁପାଇଁ ସେ ଦଗକୁ ନ ଖଟାଉଁ ମଥା ?
ଅଳସରେ କେତେ ବେଳ କାଟୁଁ ବସି ବସି
କେହୁ ଅବା ଖେଳୁଁ କେତେ ତାସ, ପଶା, କଶି ।
ସେହୁତକ ବେଳ ଯେବେ ଲଗାନ୍ତୁ ଦୋଷରେ
କେତେ ଗୁଣା ଧନ ତେବେ କମାନ୍ତୁ ହାତରେ ।
ବାଣି କାଟି ତାକୁ ରଙ୍ଗ କରଦେଇ ପୁଣ
ଦର ବୁଣି ଦେଲେ ମୂଲ୍ୟ ହେବ ତନି ଗୁଣ ।
ହାତ ଗୁଣେ କଲେ ହେବ ଗାଲଗୁ ସୁନ୍ଦର
କେତେ ଜାତ କେତେ କାମ ଅତ ମନୋହର ।
ନଅ ନୂଆ କାମ କଥା ଯେତେ ଯେ ଭାଳିବ
ନୂଆ ନୂଆ ବାଟ ତାକୁ ଆପେ ଦେଖାଯିବ ।

---

## ୯ । ଗଛ-ଛାଲରୁ ରଙ୍ଗ



(କୁଆଁରପୁନେଇ ଗୀତ ସ୍ୱରରେ ଗାଇବ)

ଦେଖ ଲୋ ଭଉଣୀ ଆମ ଦେଶରେ
କେତେ ଜାତି ଗଛ ଚଉପାଶରେ ।
ବନସ୍ତ ଆମର ଗଛରେ ଭରା
ଭେଦ ନ ପାରଇ ତହିଁକି ଖରା ।
ଗଛଗୁଡ଼ିକର ଯେତେ ବକଳ
ତହିଁରେ ରହିଛି ରଙ୍ଗ ସକଳ ।
ଗଛ ଗୋଟିକରେ ଗୋଟିଏ ରଙ୍ଗ
କେହି ନ ମିଶଇ କାହାର ସଙ୍ଗ ।
ଲୁଗା ଖଣ୍ଡି ରଙ୍ଗ କଲାବେଳକୁ
କଉଡ଼ି ଗଣୁଛେଁ ଆମେ ହାଟକୁ ।
କାହୁଁ କାହୁଁ ଅଣି ହାଟୋଇ ଭାଇ
ରଙ୍ଗ ମସା ମସା ଦିଏ ଭଣ୍ଡାଇ ।

ସବୁ ରଙ୍ଗ ଥାଇ ଆମର ଘରେ
ଆମେ ଗଣୁ ଟଙ୍କା ପରହାତରେ ।
ନ କରିବା ଦୋଷେ ଖାଲି ଏତିକ
ଘରୁ ବୋହୁ ଦେଉଁ ଧନ ଯେତିକ ।
ନ ଅଣ୍ଟେ ପେଟକୁ ଖାଇବାପାଇଁ
ତେବେ ଆମ ଆଖି ଫିଟଇ ନାହିଁ ।
ଏଣିକି ଏଥର ଆପଣା ଘରେ
ଗଛରୁ କାଢ଼ିବା ରଙ୍ଗ ହାତରେ ।
ପୁରୁଣା ଗଛର ଗଣ୍ଡିରୁ ବାଛୁ
ଛଲିଗୁଡ଼ି ସଦା ଆଣିବ ତାଞ୍ଛି ।
ନୂଆଗଛ କମ୍ବା ଗଛ ଡାଳରେ
ଅଧିକ ରଙ୍ଗ ନ ମିଳେ ସହଜରେ ।
ଶିଳରେ କୁଟିଲେ ଛାଲିଗୁଡ଼ିକ
ଟିକି ଟିକି ହୋଇଯିବ ସେତିକ ।
ମାଟି ହାଣ୍ଡିଟିରେ ପାଣି ଅଜାଡ଼ି
ସିଝାଇ ତା ରଙ୍ଗ ନେବାଟି କାଢ଼ି ।
ଛଅ ଘଣ୍ଟା ପଛେ ଜାଳବା ଚୁଲ୍ଲୀ
ରଙ୍ଗ ନ କିଣିବା ଦାଣ୍ଡରୁ ଭୁଲି ।
ସିଝିଗଲେ ଛାଲି କାଢ଼ି ଥୋଇବା
ପୁଣି ତାକୁ ପଛେ ଜାଳ କରିବା ।
ରଙ୍ଗ ଥାଣିଟିରେ ଲୁଗା ବୁଡ଼ ଇ
ଅଢ଼ ଅଧଘଣ୍ଟା ଦେବା ସିଝାଇ ।
ଲୁଗାକୁ ଉଠାଇ ଟିକିଏ ଲୁଣ
ପକାଇ ବୁଡ଼ାଅ ସେ ଲୁଗା ପୁଣ ।

ଘଣ୍ଟାଟିଏ ସିଝିଗଲେ ଜାଣିବ
ରଙ୍ଗ ହୋଇଗଲା କାଢ଼ି ଥୋଇବ ।
ଚପୁଡ଼ିଲେ ପାଣି ନିଗିଡ଼ିଯିବ
ରଙ୍ଗ କି ସୁନ୍ଦର ହେଲା ଦେଖିବ ।
ଏଣିକି ଏଥର ତୁତଅ ପାଣି
ଅବା ହୀରାକସ ଟିକିଏ ଆଣି ।
କିବା ଫିଟିକିରି ଲାଗିବ ଯାହା
କିଣିଲେ ପଛକେ କିଣିବ ତାହା ।
ଏହି ମସଲାରୁ ଗୋଟିଏ ନେବ
ପାଣିରେ ମସାଏ ଗୋଳାଇ ଦେବ ।
ଲୁଗାଟି ଭିଜିବା ଭଳି ଯେତିକି
ଲୋଡ଼ା ହେବ ପାଣିଦେବ ସେତିକି ।
ସିଝାଇଲେ ଅଧଘଣ୍ଟା ଏଥର
ରଙ୍ଗ ପକ୍କା ହୋଇ ଯିବ ମୁକର ।
ଆମ୍ବଗଛରୁ ଯେ ରଙ୍ଗ ମିଳଇ
ଚମ୍ପାଫୁଲକୁ ସେ ହେଲେ ଜିଣଇ ।
ଅଶ୍ୱତ୍ଥ ଗଛରୁ ଅଳପ ନାଲି
କଳାରଙ୍ଗ ଦିଏ ପିଜୁଳି ଛାଲି ।
ମିଳେ ହଳଦିଆ ନିମଗଛରେ
ବକୁଳ, ପଣସ ପୁଣି ବେଲରେ ।
ଅଳପ ଅଳପ ପ୍ରଭେଦ ଥାଇ
ଗାଢ଼ ନାଲିରଙ୍ଗ ଆଛୁରୁ ପାଇ ।
ଶାଳ, ପିଆଶାଳ, ଶିଶୁ, ଅସନ
ଗୋଟିକେ ଗୋଟିଏ ବିଭିନ୍ନ ବର୍ଣ୍ଣ ।

ଯେତେ ଯାହା ଆମେ ଦେଖୁଁ ଆଖିରେ
ଧନ ଭରି ଥାଇ ସବୁ ତହିଁରେ ।
ଆଖିଥାଉଁ ଯେବେ ନ ଦେଖୁଁ ଗୃହିଁ
ଧନ ଖୋଜୁ ଧନ ମିଳିବ କାହିଁ ?
ଧନ ଝୁଲୁଥାଇ ହାତ ପାଖରେ
ଧରି ନ ପଡ଼ଇ ହାତ ଦୋଷରେ ।
ପ୍ରଭୁ ଦୟାମୟ ସୁଦୟା କର
ଚିହ୍ନିବା ଶକତି ବଢୁ **ଆ**ମର ।
କାମ କରିବାକୁ ଦିଅ ସୁମତି
ଘୁଞ୍ଚିଯାଉ ଆମ ଦୁଃଖ ଦୁର୍ଗତି ।

---

## ୧୦ । ସତରଞ୍ଜି



ରାଗ—ଚକ୍ରକେଳି

ଏହି ଫରମା ଖଣ୍ଡିକ ଉପରେ
ସୁତା ଗୁଡ଼ାଇ ପକାଅ ସତ୍ୱରେ ।
ଅଗେ ଛଅଖିଅ କର ସୂତାକୁ
ବଳି ପାକଳ କରନ୍ତୁଁ ଏହାକୁ ।
ଗଣି ଅଠ ଖିଅ ପ୍ରତ ଇଞ୍ଚରେ
ଭଡ଼ି ବସାଅ ସୂତା ସମାନରେ ।

ଝିଅ ଗୋଟିକ ତୂଳାରୁ ଗୋଟିଏ
ଟେକି ବାନ୍ଧନ୍ତଅ ବଅ ଧାଡ଼ିଏ ।
ଯେଉଁ ଝିଅଗୁଡ଼ି ବାକୀ ରହିବ
ଅନ୍ୟ ଧାଡ଼ିକେ ସେଗୁଡ଼ି ବାନ୍ଧିବ ।
ସୂତା ନ ବଳ ନଅ ଝିଅ ନିଅ
ବଅ ଉଠାଇ ଥରେ ବୁଣିଦିଅ ।
ଆର ବଅଡ଼ାଙ୍ଗି ଆରଥରକୁ
ଟେକି ବୁଣ ଥରେ ଏହା ପରକୁ ।
ଏହି ପରି ଯେତେ ଥର ବୁଣିବ
ପିଟି ପଞ୍ଝାରେ ତାକୁ ବସାଇବ ।
ଜଗି ଭରଣୀ ସୂତା ସବୁବେଳେ
ଛୁଡ଼ି କୋହଳ ବୁଣୁଥିବ ହେଲେ ।
ହେବ ସତରଞ୍ଜି ବୁଣା ଆସନ
ଅତ ସହଜେ ଦେଖ ଏ କେସନ ।
ଲୋଡ଼ା ଏ ଦରବ ସବୁ ଦନକୁ
ବସି ନ ବୁଣିବା କପାଁ ମନକୁ ।
ଘରେ ଘରେ ଯାହା କର ପାରିବା
କପାଁ ସେତକ ନିଜେ ନ କରିବା ?

---

Printed by P. Kar, U. S. Press, Cuttack—20.7.40—1000.

# ଦ୍ୱିତୀୟ ଭାଗ

## ସୂଚୀ

# କର୍ମ-ସଙ୍ଗୀତ

## ( ଦ୍ୱିତୀୟ ଭାଗ )

### ୧ । ହାତକାମ




( ସାଙ୍ଗେଲ୍ସ୍ୱର—ଖେମ୍ଟା । )

ହାତେ କାମ କର ହାତେ କାମ କର
କର ହାତରେ, (କାମ) କର ହାତରେ ।
କାମ ନ କର ହେଲୁଁ କି ସବ
ହେଜ ଚତ୍ରେ; (କାମ) କର ହାତରେ ।
ବାପା ଅଜା ଥିଲେ କାମରେ ପଟୁ
ଆମେ କାମ ଛାଡ଼ି ହେଲୁଁ ନଗଟୁ
କାମକୁ ଡର ହେଲୁଁ ଏସବ
ନିଜ ଦୋଷରେ; (କାମ) କର ହାତରେ ।
ହାତ କଉଶଳ ବଳେ ଏ ଜାତ
ନାଚୁଥିଲା ଦିନେ ଫୁଲାଇ ଛାତି
ଧନରେ ଊଣା ନ ଥିଲା ଶୁଣ
ହାତ ଗୁଣରେ; (କାମ) କର ହାତରେ ।

ଆମେ ହାତ ବାନ୍ଧ କରମ ହୀନ
ଧନ ଅଭାବରେ ହୋଇଲୁଁ ଦୀନ
ଦାନା ନ ପାଉଁ                    ଅନାଇଥାଉଁ
ମରୁଁ ଭୋକରେ; (କାମ) କର ହାତରେ ।

କାମ କଲେ ଧନ ଆସିବ ଫେର
ଆମର ଦୁଆରେ ବାଜିବ ଭେରୀ
ହାତ ଚକ୍କଣେ                    ଭାତ ଚକ୍କଣ
ହେବ ସତ୍ୱରେ; (କାମ) କର ହାତରେ ।

---

## ୨ । କୃଷି



( ଇଟାଲିଏନ୍—ଖେମଟା )

କୃଷି ଅମ୍ଭର ସ୍ୱଜାତ କର୍ମ କୃଷି ଅମ୍ଭର ଧର୍ମ
ନଷ୍ଟ ହେଲୁଁ ଭ୍ରଷ୍ଟ ହେଲୁଁ ନ ବୁଝି କୃଷିର ମର୍ମ ।

କୃଷି ଅମ୍ଭର ମୋକ୍ଷବୃତ୍ତି ବୃତ୍ତି ଅମ୍ଭର ଛାଡ଼,
ଅଳସେ ବିଳାସେ କାମରେ ନ ଲାଗି
ହୋଇ ଗଲୁଣି ଅନାଡ଼ ।
ଆସ ଆସ ଏବେ ଲଙ୍ଗଳ ଚଳାଇ
କରିବା କୃଷିକର୍ମ ।
କୋଡ଼ କାଙ୍କ ଧର ଭିଡ଼ିବା କମର
ଛାଡ଼ିବା ଭୂଇଁକୁ କଷି,
ରତନ ପ୍ରସୂତ ଜନନୀ ବକ୍ଷରୁ
ରତନ ତୋଳିବା ବସି ।
ଦୁଃଖ ଦୁରିତ ସବୁ ଘୁଞ୍ଚିବ
ବହିଲେ ଶିରରୁ ଘର୍ମ ।

ଅମ୍ବର ଭୁଇଁରେ ଢାଳି ଦେଉଛନ୍ତି
ବ୍ରାହ୍ମଣୀ, ମହାନଦୀ,
ବୈତରଣୀ ଜଳେ ସୁବର୍ଣ୍ଣର ସାର
ନ ଶକ୍ତି ହୋଇଲୁଁ ରଦ ।
ହାତରେ ବୁଣିବା ହାତରେ କାଟିବା
ନାହିଁ ଏଥି ଲାଜ ଶର୍ମ ।

---

## ୩ । ସୂତାକଟା



( ରାଗ—ଭଙ୍ଗା ଗଡ଼ମାଳଆ )

ସୁତାକଟା ଛାଡ଼ିଦେଇ,
ଭଜିଲଣି ଏବେ କେଉଁ ଦଶାକୁ ହେ
ଭାଇମାନେ !
ବୁଝିଲ କି ତାହା କେହ୍ନ ?
କଲଲ୍ଗା ରୂପ ଗୃହିଁ,
ବାପା ଅଜାଙ୍କର କପାଗୁଣକୁ ହେ
ଭାଇମାନେ !
ବସିଲ ଦେଇ ବୁଡ଼ାଇ ।

ଚିକ୍କଣ କପଡ଼ା ପିନ୍ଧ,
ଘର ଧନ ଦେଲ   ପରଙ୍କୁ ବୋହି ହେ
ଭାଇମାନେ !
ନିଜ ଘରେ ଖୋଲ ସିନ୍ଧ ।
କଳ ସୂତା ହାତେ ପାଇ,
ଅରଟରୁ ମାଲ   ଦେଲ ଛଡ଼ାଇ ହେ
ଭାଇମାନେ !
ଏବେ ହାତ ଚଳୁ ନାହିଁ ।
ଗାନ୍ଧିଙ୍କ ବଚନ ଶୁଣି,
ତର ତର ହୋଇ   କେଇଟା ଧନ ହେ
ଭାଇମାନେ !
ଖୋଜିଲ ଅରଟ ପୁଣି ।
ଅରଟ ଅରଟ କହି,
ଅଳପ ଧନକୁ   ମାତ ଉଠିଲ ହେ
ଭାଇମାନେ !
ଚମକିଗଲା ଏ ମହୀ ।
ଆଖି ଭୁଲାଇବାପାଇଁ,
ଛାତରେ ମୁଣ୍ଡରେ   ଅରଟ ଛାପା ହେ
ଭାଇମାନେ !
ଦାଣ୍ଡକୁ ଦେଲ ଦେଖାଇ ।
ମୋଟ ସୂତା ଖିଏ ଖିଏ,
କାଟି ଦେଇ ମନେ   ମନେ ମଣିଲ ହେ
ଭାଇମାନେ !
ଆମଠାରୁ ବଡ଼ କିଏ ?

ତମର ଅଇମା ବୁଢ଼ୀ
କେଡ଼େ ସରୁ କେଡ଼େ ଚକ୍କଣ ସୂତା ହେ
ଭାଇମାନେ !
କାଟୁଥିଲେ ଗଲ ବୁଡ଼ି ।
ପିନ୍ଧଣ ମୋଟ ଖଦଡ଼
ଦେଖାଇଲ ସିନା ନାହିଁ ସେ ହାତ ହେ
ଭାଇମାନେ !
ହୋଇଗଲଣି ଅଦଢ଼ ।
ଯେବେ ଏଠୁଁ ଲୁଗା ଯାଇ
ବିଦେଶୀଙ୍କ ଆଖି ଦେଲା ଫିଟାଇ ହେ
ଭାଇମାନେ !
କଳର ଜନମ ନାହିଁ ।
ଥିଲା ଏ ଦେଶରେ ଯାହା,
ହରାଇ ସାରିଛ ସବୁ ସେତିକ ହେ
ଭାଇମାନେ !
ଖୋଜିଲେ ନ ପାଇ ତାହା ।
ଲୋକଦେଖା କଥା ଛାଡ଼,
ସତେ ସତେ ଯେବେ କରିବ କଛୁ ହେ
ଭାଇମାନେ !
ଲଗିପଡ଼ ଭାଙ୍ଗି ହାଡ଼ ।
ମନ କଲେ ଖାଲି ଠାଣି,
ସବୁ କଉଶଳ ଆସିବ ଫେରି ହେ
ଭାଇମାନେ !
ଅତି ସହଜରେ ଜାଣି ।

ଘରେ ଘରେ କପାବୃକ୍ଷ
ନ ହେଲେ ପଦ୍ମଲେ        ସତେ କ ଜାଣ ହେ
ଭାଇମାନେ !
ପୂରବ ଲୁଗାର ଅଣ ?
କରନ୍ତ ସମସ୍ତେ ପଣ
ଯେ ଯାହା ଜମିରେ        ଲଗାଇ କପା ହେ
ଭାଇମାନେ ।
କାଟନ୍ତ ଜଣକୁ ଜଣ ।
ଅପଣା ଲୁଗାଟି ପାଇଁ
ନ କାଟିବାଯାଏ        ଅପଣେ ସୂତା ହେ
ଭାଇମାନେ ।
ସେ ଅଣା ମେଣ୍ଟିବ କାହିଁ ?
ଖଟାଇ ନିଜେ ନ ଖଟି
ମଜୁର ଗଣିବ        କେତେ କାଳକୁ ହେ
ଭାଇମାନେ ।
ଅକାଳେ ପଡ଼ିବ ହଟି ।
ପଣଅାଈଙ୍କ ହାତରେ
ହେଉଥିଲା ସୂତା        କେଡ଼େ ସୁନ୍ଦର ହେ
ଭାଇମାନେ ।
ହେଜ ତା ମନ ଭିତରେ ।
ତାଙ୍କର ନାତ ନାତୁଣୀ—
ତାଙ୍କ ହାତ ହେଲେ        ପାଇବ ଫେର ହେ
ଭାଇମାନେ ।
ହେଲେଟି ଭଲ କାଟୁଣୀ ।

କଳସୂତା ଯିବ ଛୁଟି,
ହାତକଉଶଳ          ବଢ଼ାଇନେଲେ ହେ
ଭାଇମାନେ ।
ମନ ଦେଇ ଖାଲି ଖଟି ;
ତନ୍ତୀଙ୍କ କରମ ମନ୍ଦ,
କଳସୂତା ବୁଣି          ବୁଣି ସେ ଅନ୍ଧ ହେ
ଭାଇମାନେ ।
ଏଣିକି ପଡ଼ୁଛି ଛନ୍ଦ ।
ନିଜ ପଣଅଜାଙ୍କର
ଦେଖି ତ ନାହାନ୍ତି          ହାତଗୁହୁରି ହେ
ଭାଇମାନେ ।
ହୁଅନ୍ତି ଶୁଣି କାତର ।
ତାଙ୍କ ହାତ କରାମତ
ଦେଖି ଚମକିଲା          ଦୁନିଆ ଦିନେ ହେ
ଭାଇମାନେ ।
ଫେରିଲା ଦୁନିଆ ଗତ ।
ତମରି ହାତ ସୁନ୍ଦର
ହେଲାଷଣି ସବୁ          ଅସିବ ଫେରି ହେ
ଭାଇମାନେ !
ଫେରିବ ହାତ ତାଙ୍କର ।
କାଟି ପିନ୍ଧିବାର ସୁଖ
ନ ବୁଝିଲେ କୁଟି          ଖାଇବା ଦାଉ ହେ
ଭାଇମାନେ ।
ନ ଘୁଞ୍ଚିବ ଆମ ଦୁଃଖ ।

---

## ୪ । ନାଲଆ ଗୀତ



( ମିଶ୍ରବେହାଗ୍—ଆଠତାଳ )

ଯାଇଥିଲି ଗୁନ୍ଦବାଲି,
ଗୁନ୍ଦବାଲି ଛାଡ଼ି ଆସିଲି ଫେର ମୁଁ
ଗାଆଁ ଗାଆଁ ବୁଲି ବୁଲି ।
ଦେଖିଲି କନକା ଗଡ଼,
କନକା ଗଡ଼ରେ ରାଜାଙ୍କ ନଅର
କୋଠାବାଡ଼ି ବଡ଼ ବଡ଼ ।

ଗଡ଼ରୁ ଗାଆଁ ଭିତରେ
ବୁଲି ବୁଲି ଆସି ପହଞ୍ଚି ଗଲି ମୁଁ
କୁଜଙ୍ଗ ସୀମା ପାଖରେ ।
କୁଜଙ୍ଗ ରାଇଜ ରଜା
ଗଲେଣି କୁଆଡ଼େ ଏଣିକି ସେ ଲୋକେ
ବଙ୍ଗାଳୀ ରାଜାଙ୍କ ପ୍ରଜା ।
ଦରିଆ କନାରାଯାକ
ଠାଆ ଠାଆ ଖାଲି ସୁନ୍ଦରୀବଣ ଗୋ
ଲାଗିଅଛୁ ଥାକ ଥାକ ।
କେଉଟ ମାରନ୍ତି ମାଛ,
ପଶି ଯାଉଛନ୍ତି ଦରିଆ ଭିତରେ
ପିନ୍ଧି ଖଣ୍ଡେ ଖଣ୍ଡେ କାଛ ।
ଧନ୍ୟ ସେ କେଉଟ ଜାତ,
ଜାଲ ବାହୁଛନ୍ତି ମଝି ଦରିଆରେ
ଧନ୍ୟ ଧନ୍ୟ ତାଙ୍କ ଗୁତ ।
ଦେଖିଲି ଶୁଖୁଆ ଖଳା,
ଗୁଣ୍ଡ଼ ଦେଇଛନ୍ତି ଜାଗାକୁ ଜାଗା ସେ
ବାଲିରେ ମଳାକୁ ମଳା ।
କୁଜଙ୍ଗରୁ କିଛି ଦୂର
ପହଞ୍ଚିଲି ଆସି ଆଉ ଏକ ଜାଗା
ନାମ ତା ହରିଶପୁର ।
ଖୁଦୁରିଆ ରଜା ଏକ
ଥିଲେ ଆଗେ ଏଥି ଜାଗାଟି ଖୁଦର
ନାମ ଥିଲା ଭାରି ଠେକ ।

ରଣରେ ଗଲେ ସେ ସଢ଼ି,
ଶେଷେ କଳିକତା ଧନୀଙ୍କ ହାତରେ
ଗଲା ଏ ସ୍ୱରଜ ପଡ଼ି ।
ଦାଦଅ କୁଳଟାଯାକ
ନ ଦେଖିଲ ପୂର୍ବ ତାହାର ଘରେ ତ
ଖାଇବା ଦାନା ମୁଠାକ ।
ଧାନ ଗଣ୍ଡା ଗଣ୍ଡା କୁଣି
ଅଜ ତ କାହିଁକ ଦଣ୍ଡେ ନ ହଲନ୍ତ
ବରଷ ଗୋଟାକ ପୁଣି ।
ଧାନଟି ଉତୁରିଗଲେ
ଖାଇ ପିଇ ନାଚ କୁଦ ବରଷଟା
କଟାଇ ଦଅନ୍ତ ଭଲେ ।
ତ୍ରୁଟି ହେଲେ ଧାନଫଳ,
ଅଜ ବାଟ କଛୁ ନ ଦଶେ କାହାକୁ
ହଜିଯାଏ ସବୁ ବଳ ।
ରଜା ପୀଡ଼େ କର ପାଇଁ,
ପିଲା ଛୁଅ କାନ୍ଦ କୁଲନ୍ତ ଭୋକରେ
ଖାଇବାକୁ ଦାନା ନାହିଁ ।
କରମ ତାଙ୍କର ମନ୍ଦ,
ଧାନ ଛଡ଼ା କଛୁ ନ ଦଶେ ତାହାଙ୍କୁ
ଅଜ ସବୁଥିକ ଅନ୍ଧ ।
ଦେଖିଲ ମୁଁ ଯହିଁ ଯେତେ
ଧନଦାଉଲତ ଭରି ରହିଅଛୁ
ପାଖେ ପାଖେ ତାଙ୍କ କେତେ ।

ମନ କଲେ ଧନ ପାଇ,
ଲୋକେ ମରୁଥିବେ ତୋ ଭଳି ନ ପାଇବେ
ଧନକୁ ଗୁହିଁବେ ନାହିଁ ।
ବସିଲେ କିଛି ନ କର
କିଏ ଅବା କାହୁଁ କେମନ୍ତେ କାହାକୁ
ଆଣିଦେବ ପେଟ ଭର ?
ଦେଖିଲ ନାଳିଆ ଘାସ,
ସବୁଆଡ଼େ ଖାଲ ମାଡ଼ ଯାଉଅଛି
ନ କର ତାହାକୁ ଗୁଷ ।
ଜାଗା ଜାଗା କାହିଁ କେହି
ପାଟୁଆ ଟୋକେଇ ବୁଣି ବିକୁଛନ୍ତି
ଅଣା କି ଦି ଅଣା ନେଇ ।
ନାଳିଆ ଶର ଥୋଇବ,
ଗୋଇଠିରେ ରଙ୍ଗ ତୁଳି ଚଲାଇଲେ
ଅନ୍ତି ବାହାରିବ ।
ପାଟିଆକୁ ପୁଣ ଧର
ଆଉ ଥରେ ତାକୁ ଚିରିପକାଇବ
ସବୁ ଓ ସମାନ କର ।
ବୁଣିବ ତାକୁ ଏଥର,
କେତେ ଜାତି କେତେ ଦରବ ହୋଇବ
ଦେଖିବାକୁ ମନୋହର ।
ବୁଣିଲେ ନାଳିଆ ଜାଣି
କେତେ ଗଣ୍ଡି ଅଙ୍କ ଅଣ୍ଟାକୁ କଡ଼ଉ
ଆଣିବ ସେ ବଳେ ଟାଣି ।

ନାଳିଆ ରଙ୍ଗ ସୁନ୍ଦର
ହାତକୁ କଅଁଳ ଅଧିକ ଚକ୍‌କଣ
ନାହିଁ ତାର ପଟାନ୍ତର ।
ଯେଉଁ ରଙ୍ଗେ ପୁଣି ତାକୁ
ରଙ୍ଗ କରଦେବ ସେ ରଙ୍ଗ ଧରିବ
ବଢ଼ାଇଦେବ ଶୋଭକୁ ।
ଶୋଇବା ପାଇଁ ତହିଁରେ
ପଟି ବୁଣିଦେଲେ ତା ସଙ୍ଗେ ତୁଳନା
ନ ଥିବ ଆଉ ମହୀରେ ।
ଦେଶଯାକ ଆମପାଇଁ
ଯେତେ ଯେ ଦରବ ଖଞ୍ଜିଛୁ ବଧାତା
ଆଉ କାହିଁ ଏତେ ନାହିଁ ।
ସେ ସବୁ ଯାଉଛି ଶୁଖି,
ଅକର୍ମୀପଣକୁ ଆମେ ସିନା ଖାଲି
ହୋଇଅଛୁଁ ଚିରଦୁଃଖୀ ।
କିଆବୁଦା ଧାଡ଼ ଧାଡ଼
ସେହି ସେ ଦରବ କୂଳଯାକ କେତେ
ଯାଉଅଛି ଖାଲି ମାଡ଼ ।
କେତେ ଯେ ପତର ତହିଁ
ଅଲୋଡ଼ାରେ ହିଡ଼ ସଢ଼ି ଯାଉଅଛି
ହେବ କି ତା ସୀମା କହି ?
ବୁଣିଲେ ପତରଯାକ
କେତେ ଧନ ତାଙ୍କ ହାତରେ ଖେଳନ୍ତା
ଫେରନ୍ତା କରମ ତାଙ୍କ ।

ସେଠାରେ ହେନ୍ତାଳ ବଣ,
ସେହୁଠାରେ ବହୁ- ମୂରୁଗା ମାଡ଼ିଛି
ତା ଗୁଣ କାହିଁରେ କଣ ।
କେତେ ଧନ ଏ ଦେଶରେ
ଅଛି ଭରି ପୁଣି ସମୁଦ୍ର ସମ୍ପଦ
ରହିଛି ତାଙ୍କ ପାଖରେ ।
ସମ୍ପଦ ଚହ୍ନନ୍ତି ନାହିଁ,
ଖାଲି ଭାଳୁଥାନ୍ତି କେବେ କି ବିପଦ
ଅସୁଛି ତାଙ୍କର ପାଇଁ ।
ଭଜି ଭଜି ସଦା ଦୁଃଖ
ମଣିସାରଲେଣି କେବଳ ଏଣିକି
ଦୁଃଖ ଭାଳେଣିରେ ସୁଖ ।
ହେ ବିଶ୍ୱଭୁବନପତି !
ଯାଙ୍କପାଇଁ ଏତେ ଖଞ୍ଜିଅଛ ତାଙ୍କୁ
ନ ଦଅ କପାଁ ସୁମତି ?
ହେ ପ୍ରଭୁ କରୁଣା କର,
ଚଳୁ ତାଙ୍କ ଅଙ୍ଗ ଫେରୁ ତାଙ୍କ ଢଙ୍ଗ
ଘୁଞ୍ଚାଅ ଦୁଃଖ ତାଙ୍କର ।

---

## ୪ । ଚକ୍ ଷ୍ଟିକ୍

(ଇଟାଲିଏନ୍—ଖେମଟା)

ଶିଳ୍ପପଟା ଧରି ଦୁଧଖଡ଼ି ଚୂରି
ଗଢ଼ିନେବା ଚକ୍ ଷ୍ଟିକ୍,
ନିଜେ ଚୂରିବା ନିଜେ ଗଢ଼ିବା
ନିଜ ନିଜ ଚକ୍ ଷ୍ଟିକ୍ ।
ପାଣି ଟୋପିଏ ଅଠା ଟିକିଏ
ଗୋଳାଇ ଦିଅ ମିଳାଇ ନିଅ
ବଳିଦେଲେ ହେବ ଠିକ ।
(ଦେଖ) ବଳିଚୁଁ ଏ ଚକ୍ ଷ୍ଟିକ୍
(ଦେଖ) ହେଲା କି ନା ହେଲା ଠିକ୍ ।
ରଙ୍ଗ କରିବ ? ରଙ୍ଗ ଗୋଳିବ,
ମିଳାଇ ଦିଅ, ଶୁଖାଇ ନିଅ,
(ଦେଖ) ହେଲା କି ନା ହେଲା ଠିକ୍ ।
(ଦେଖ) ଏହି ସେହି ଚକ୍ ଷ୍ଟିକ୍ ।
ଆମର ବଣରେ ମିଳେ ଏହି ଖଡ଼ି,
କିଏ କାହୁଁ ଆସି ନେଇଗଲେ ତାଡ଼ି,
ଗଢ଼ି ଆଣିଲେ, କଉଡ଼ି ନେଲେ,
ପାଖରେ ଥାଉଁ, କିଛି ନ ପାଉଁ,
ଛି ଛି ଆମକୁ ଧିକ୍ ।
(ଦେଖ) ଏହି ସେହି ଚକ୍ ଷ୍ଟିକ୍ ।
(ଦେଖ) ହେଲା କି ନା ହେଲା ଠିକ୍ ।

ଧନ ଧନ ବୋଲି
ଶୁହିଁ ରହିଥାଉଁ
ପାଟି ନ କରୁଁ, ହାଁ ହୁଁ
ଦେଖି ନ ଦେଖୁଁ, ଶୁଣି ହୁଁ
ଶୁଣି ହେଉ ଧକ୍ ଶିକ୍ ।
(ଦେଖ) ହେଲା କି ନ ହେଲା ଠିକ୍ ।
(ଦେଖ) କଲୁଁ ଏହି ଚକ୍ ଝିକ୍ ।
(କହ) ହେଲା କି ନ ହେଲା ଠିକ୍ ।

---

## ୬ । ଖଜୁରିପଟ



(ଇଟାଲିଏନ୍—ଖେମଟା)

ଦେଖ ଏହି
ଖଜୁରି ଗଛରୁ ଖଜୁରି ପତର
ଆଣି ଗୋଟି ଗୋଟି ଧରି,
ଛୁରି-ମୁନରେ ଚିରି ପକାଇଲୁଁ
ତାକୁ ସରୁ ସରୁ କରି ।
ତା ପରେ
ଖରାରେ ଶୁଖାଇ ଦେଲୁଁ,
ବେଣ୍ଟ ଖଣ୍ଡି ଛାଞ୍ଚିନେଲୁଁ,

ନର୍ମସଙ୍ଗୀତ

ବାନ୍ଧଲୁଁ ସୁତାରେ
ଅଗ ଗଲା ଭର । ୧ ।
ଶେଷେ
ସୁତା କାଟୁ ଅଣି,
ଗୁଡ଼ାଇଲୁଁ ଠାଣି ଠାଣି,
ଖୁଆ ବାଢ଼ିବାକୁ ତା ଉପରେ ପୁଣି
ଟଙ୍ଗି ଦେଇଅଛୁଁ ଜର । ୨ ।
ଦେଖ
ହାତ କରାମତ ଏହୁ,
(ଏହା) ସହଜେ ବୁଝିବ କେହୁ ?
ଖଜୁର ପତର ମାଡ଼ ଯାଉଅଛୁ
ତହିଁରୁ ହେବ ଏପର । ୩ ।
ଏହାକୁ
ରଖି ଦେଇଥିବ ଘରେ,
ଝାଡ଼ଦେବ ଥରେ ଥରେ
ଟେବଲ, ଚେଆର, ବହୁ, ଆଲମାର,
ନିଜେ ନିଜ ହାତେ ଧର । ୪ ।
ଅହା !
ଏପର ଦରବ କେତେ,
ଅଲୋଡ଼ା ଯାଉଛୁ ଯେତେ,
ଖୋଜ ଖୋଜ ଅଣି କାମ କରଦେଲେ
(ଅମ) ନ ଯିବ କା ଘର ଭର ? ୫ ।

## ୭ । ଅଥ

(ଇମନ୍‌କଲ୍ୟାଣ—ଏକତାଲ)

ସୁବର୍ଣ୍ଣ ଭୂଇଁରେ ଆମ ବାସ
(ଅମେ) ପେଟଭୋକେ ସିନା ହେଉଁ ନାଶ ।
କିଏ କାହୁଁ ଆସି ବୋହୁ ଦେଇଯାନ୍ତି
ଆମକୁ ନ ମିଳେ ପୂର୍ଣ୍ଣ ଗ୍ରାସ ।
ଆମର ବନସ୍ତେ ତରୁରାଜ
ଫଳଭରେ ଡାଳ ପଡ଼େ ଭାଙ୍ଗି
(ହରଡ଼ା ଫଳ ତ କାହିଁ କେତେ
ବାହାଡ଼ା ତ ସଡ଼ିଯାଏ ଯେତେ
ଅଁଳା ଫଳଟି ଲେଡ଼ା ଏତେ)
ଅମେ ଗୃହିଁ ଥାଉଁ ସେ ଫଳ ନ ଖାଉଁ
ସହୁଥାଉଁ ପେଟଭୋକ ତ୍ରାସ । ୧ ।
ଅଁଳା ମୁରବ୍ବା କରିବାକୁ
ଫୋଡ଼ ଫୋଡ଼ ଆଗେ ଦିଅ ତାକୁ
(ଚୂନପାଣିରେ ବୁଡ଼ାଅ ଥରେ.
ଅଧଘଣ୍ଟାରେ ପୁଣି ଥରେ
ଦହିପାଣିରେ ବୁଡ଼ା ତା' ପରେ)
ଦେଢ଼ଘଣ୍ଟା ପରେ ସିଝାଅ ନିଆଁରେ
କଷା ଗୁଣ ତାର ହେବ ହ୍ରାସ । ୨ ।
କଷର ପାଣିକୁ କାଢ଼ି ଦିଅ
ପୁଣି ଦହିପାଣି ତହିଁ ନିଅ

ଗର୍ଭ ଗୀତ

ାଝି ତାକୁ ସିଝାଇ
ମୁରସ ଦହି ମିଶାଇ
ଣ ତାକୁ ଦଅ ଗୋଳାଇ)
ନାଅଁରେ ବସାଅ
ଓତେ ରୋଗ ଏଥି ହେବ ନାଶ । ୩ ।

---

## ୮ । ଆଖୁ ଶର



(ଇମନ୍—କବାଲ)

ଅଖୁବୃକ୍ଷ ଯେତେ ହେଲଣି ଦେଶରେ,
ଅଖୁ ଫୁଲ ଯେତେ ଫୁଟେ ତା ଅଗରେ,
ସେହି ଫୁଲଗରେ ଅଛା କି ସୁନ୍ଦର !
ସେଗୁଡ଼ିକ ପୋଡ଼ି ଦେଉଛ ଶେଷରେ ।୧।

କର୍ମସ୍ଥ

ଚିକ୍କଣ ସରଳ
ରଙ୍ଗଟି ତାହାଙ୍କୁ
ଜାଣି କି ଭୁଟ୍ଟାକୁ ଖେ
ଗଢିଥିଲେ ବିହି ଏତେ ଯତ୍ନ
ସେହି ଶର ଯେବେ ଶୁର
ଚିରିଦେବ ଅଟେ ଗୋଟି ଗୋଟି
ଛୁରୀରେ ତାହାର ଅନ୍ତ୍ରଟି ବାହାର
କଲେ ପାଇଯିବ ପାଟିଆ ହାତରେ । ୩ ।
ସେହି ପାଟିଆକୁ ଖୋଲି ଦେଲେ ବୁଣି,
ଏହି ହାତଗୁଣେ କି ନ ହୁଏ ପୁଣି
ଥରେ ଯେ ଶୁହିଁବ ତା ମନ ମୋହିବ
ନ ବୁଝୁଁ ତା ମୂଲ୍ୟ ପାଇ ନିଜ ଘରେ । ୪ ।
ବାଛି ବାଛି ନେବ ସେହି ଅଖୁଣର
କାଟି ଦେବ ତାକୁ କରି ଗର ଗର,
ମଣ୍ଡିଳ ଖଞ୍ଜିବ ପାତରେ ବାନ୍ଧିବ
କେତେ ଜାତି ଝୁଡ଼ି ହେବ ସହଜରେ ।୫।
ଧନ ଦଉଲତ ଯେତେ ଆମ୍ଭ ପାଇଁ,
ଖଞ୍ଜି ଦେଇଛନ୍ତି ପାଶେ ବିଶ୍ୱସାଇଁ
ବୁଝି ନ ବୁଝି ବା ହାତେ ନ ଛୁଇଁବା
ଦୁଃଖେ ନାଶ ହେବା ଆପଣା ଦୋଷରେ । ୬।

---

# ଗ୍ରାମଗୀତ

## କମ୍ବଳ



(ରାଗ—ଦେଶାକ୍ଷ)

ଆମର ଦେଶରେ ମେଣ୍ଢାଙ୍କ ଦେହରେ
ଲୋମ ଅଛୁ ଯେତେ ଯେତେ,
କାଟି ଆଣି ଖାଲ କମ୍ବଳ ବୁଣିଲେ
କମ୍ବଳ ହୁଅନ୍ତା କେତେ ଗୋ, ଶୁଣ ।
ମେଣ୍ଢାଲୋମର ଅଶେଷ ଗୁଣ ଗୋ, ଶୁଣ ।
ଖାଲ ଧୁଅ ତାକୁ ପୁଣ ପୁଣ ଗୋ, ଶୁଣ ।
ସଫା କର ସୁତା କାଟି ବୁଣ । ୧ ।

କର୍ମସଙ୍ଗୀତ

ସଫା ଲେମ ଗୁଡ଼
ହାତେ ହାତେ
ବୃଥା ନାଠିଛିରେ
ଅଧିକ ଯତନ କର ଗୋ,
କର କଳଣା ହାତମୁଠାକୁ ଗୋ,
ବଳ ବଳଣା ଭଗିଲ ପାକୁ ଗୋ, ତାକୁ
ସଜ ହେବ ସୂତା କାଟିବାକୁ । ୨ ।

ଅରଟ ଝଣ୍ଡିଏ ହେଉ ଯେଉଁ ଭଳି
ତାକୁ ଡ଼ିଠି ଏଥି ପାଇଁ
ବଢ଼ କରଥିବ ସୂତା କାଟି ଦେବ
ହାତକୁ ଲଗିବ ନାହିଁ ଗୋ, ଜାଣ ।
ହାତଗୁଣେ ଫିନା ମୂଠା ଟାଣ ଗୋ, ଜାଣ ।
ଶୀତେ କମ୍ବଳ ବଞ୍ଚାଏ ପ୍ରାଣ ଗୋ, ଜାଣ ।
ଖୋଜା ନ ଥାଇ ଏଥି ପ୍ରମାଣ । ୩ ।

ଲକ୍ଷ ଲକ୍ଷ ମେଣ୍ଢା ଅଛନ୍ତି ଏଦେଶେ
ଲୋମଗୁଡ଼ିକ ତାଙ୍କର
ନ କାଟି ତୁଚ୍ଛାକୁ ହେଉଅଛି ମାଟି
ଅଯୋଗ୍ୟ ପଣେ ଅମର ଗୋ, ଦେଖ ।
ଦେଶଯାକ ଅମେ ଅବିବେକ ଗୋ, ଦେଖ ।
ଶୀତକାଳକୁ ନ ଥାଇ ଭେକ ଗୋ, ଦେଖ ।
ଅନ୍ଧ ହୋଇ ହରାଇଛୁଁ ଠେକ । ୪ ।

ଯେତେ ପରକାରେ ଦେଉଛନ୍ତି ବହୁ
ନେଇ ନ ଜାଣିବୁଁ ଯେବେ

ସଙ୍ଗୀତ

ହ୍ରାନ ହୋଇ ହୋଇ
ତେବେ ଗୋ, ମିତ ।
ଆଇ କେତେ ବ୍ରତ ଗୋ, ମିତ ।
ଯେବେ ଜାଜ ହୃତ ଗୋ, ମିତ ।
ଗୁଥିବୁ ସଦା କାଳେ ଶୀତ ।୫।

---

## ୧୦ । ସାବୁନ୍



(ଇଟାଲ୍ଏନ୍—ଖେମ୍ଟା ।)

(ଜାଣୁ ଅଟମ) ସାବୁନ୍ ତିଆର ବାଗ ।
ଥଣ୍ଡା ପ୍ରଣାଳୀ ଗରମ ପ୍ରଣାଳୀ
ଦୁଇ ପ୍ରଣାଳୀର ଭାଗ ।

କର୍ମସଙ୍ଗୀତ

(ସାବୁନର) ପିଣ୍ଡ [illegible]
ଯେଉଁ ତେଲ ଦେବ
ନ ମିଶାଇ କିଛୁ [illegible]
(ତା ଭିତରେ) ନଡ଼ିଆ ତେଲ [illegible]
ନଡ଼ିଆ ତେଲରେ ବ[illegible]
ଦେଖିଲେ ମନ ହରଷ ।
(ତେଲ ସଙ୍ଗେ) କଷ୍ଟିକ୍ ସୋଡ଼ା ଜାଣ
କଷ୍ଟିକ୍ ସୋଡ଼ା ସବୁଥିରେ ଲୋଡ଼ା
ସେତକ ତାହାର ପ୍ରାଣ ।
(ସବୁବେଳେ) ଭାଗ ମାପ କରି ନେବ
ଯେଉଁ ତେଲ ସଙ୍ଗେ ଯେତକ ଲାଗିବ
ଓଜଣା ଅଧିକ ନ ହେବ ।
(ସାବଧାନ) କଷ୍ଟିକ୍ ନ ଧର ହାତେ
କାକରପାଣିରେ ପକାଅ ତାହାକୁ
(ପାଣି) ତାତିଯିବ ସାଥେ ସାଥେ ।
(ଥଣ୍ଡା ହେଲେ) ପଲାଏ ପଲାଏ ପାଣି
ତେଲରେ ଢାଳିବ ତାକୁ ଗୋଳାଇବ
କାଠଚଟୁ ଖଣ୍ଡେ ଆଣି ।
(ଦେଖିବ ଯେ) କ୍ରମେ ହେଉଥିବ ଘନ,
ବୁଝିବ ପାଗଟି ଠିକଣା ରହୁଛି
ତୋଷ ହୋଇଯିବ ମନ ।
(ଏବେ ତାକୁ) ଛାଞ୍ଚଟିରେ ଢାଳିଦେବ,
ଟାଣ ହୋଇଗଲେ ଛାଞ୍ଚରୁ ଉତାରି
ଖଣ୍ଡ ଖଣ୍ଡ କାଟି ନେବ ।

… କେ ପାଇଛି ଶେଷ,
… ପରକୁ ଅନାଇ
…ଥିବ ଆମ ଦେଶ ?
… ଅଛୁ) ଗରମ ପ୍ରଣାଳୀ ପାଗ,
…ଭିଦ ସବୁ କର ହେବ
…ବୋ) ଅଳସ୍ୟକୁ କର ତ୍ୟାଗ ।

---

## ୧୧ । ହାତ




( ରାଗ—ଶଙ୍କରାଭରଣ )

ହାତୁଁ ବଳ ହତଅର ନାହିଁ ଜଗତରେ ,
ବହୁ ଖଞ୍ଜିଛନ୍ତି ହାତ ମାନବ ଅଙ୍ଗରେ,
ଯେବେ ଏତକ ବୁଝିବ,
ହାତବଳେ ଜଗତକୁ ହେଲେ ଜିଣିଯିବ । ୧ ।
ଯେତେ ଯା ଦେଖି ଚକିତ ହୁଅ ଥରେ ଥରେ,
ହେଜିଲେ ବୁଝିବ ସବୁ ଗଢ଼ା ଏ ହାତରେ,
ଏହୁ ହାତର ମହିମା,
କେ ପାରିବ କଳି ଅବା କେ କହିବ ସୀମା । ୨ ।
ହାତ ଥାଉଁ ହାତ ଯେବେ ଚଳାଇ ନ ଜାଣୁ,
ଯାବତ ଦୁଃଖେ ଦୁର୍ଗତ ଆପେ ବର ଅଣୁ,
ଆଉ ନିନ୍ଦିବା କାହାକୁ,
ନିଜ କର୍ମଫଳ ନିଜେ ହେବ ଭୁଞ୍ଜିବାକୁ । ୩ ।

ନିଜ ଜାତି ଦେଶ ଏବେ
ନ ବୁଝିବୁଁ ଯେବେ ଆ...
କହ କେମନ୍ତେ ଏ ଜାତି,
ବିଲୋପ ନ ହୋଇ ଠେକ ରହିଥିବ...
ବାଳକ ବାଳିକା ବୃଦ୍ଧ ଯୁବକ ସକଳେ
ଶିଖ ହାତ ଗୁଣ, ଏକା ଏହି ହାତବଳେ,
ହଟିଯିବ ସବୁ ଦୁଃଖ,
ଉଜ୍ଜ୍ୱଳ ହୋଇବ ନିଜ ଜାତି ଦେଶମୁଖ । ୫

---

## ୧୨ । ପାଠ ଓ କାମ

(ଗଜଲ—କବାଲି)

ଏବେ ଯୁଗ ତ ଓଲଟି ଗଲଣି ରେ,
ବହି ପାଠ ତ ଅପାଠ ହେଲଣି ରେ ।
ପାଠୁଆ ପାଠ ସାରି ଦେଖ କି ହରବର,
ଚାକିରି ଖୋଜି ଖୋଜି ବୁଲନ୍ତି ଘର ଘର,
ମହତ ଗଲା ବୁଡ଼ି **ଡିଗିରି କାଗଜର,**
ବୁଡ଼ିଲା ଜ୍ଞାନ ଧ୍ୟାନ ସବୁ ଏବେ ତାଙ୍କର ।
**ଆଉ** ନାହିଁ ତ ସେ ମନଫୁଲଣି ରେ । ୧ ।
କମାର ନେହି ଧରି ବସେ ଛାତ ଅଣ୍ଟରେ,
କୁମ୍ଭାର ହାଣ୍ଡି ଗଢ଼ି ଯାଉଛି ତା ଚକରେ,
ବଢ଼େଇ ଠୁକୁ ଠୁକୁ କରେ ବସି ତା ଘରେ,
ହାଙ୍କର ଦେଢ଼ଟଙ୍କା ଏବେ ଖଣ୍ଡେ କାଠରେ ।
ବହି ପାଠକୁ ହଟାଇ ଦେଲେଣି ରେ । ୨ ।

ଦେନକୁ ପାଞ୍ଚଅଣା,
ଅନାଦେଇ ଚେକ୍ ଘଣ୍ଟା,
ଦେଖି ଦେଖି ଖାଲ୍ ହୁଅଇ ବଣା,
ଭଲ ଗାଲେ ମାରଇ ଚଟକଣା ।
ଏଭଳି ପାଠକୁ ମେଲଣି ରେ । ୩ ।
ବେଳହୁଁ ପାଠ ସଙ୍ଗେ କୋଡ଼ କୋଦାଳ ଧର,
ହାତକେ ଥାଉ ବହି ହାତକେ କାମ କର,
ମୂଳରୁ ଦମ୍ଭ କର ନିଜେ ନିଜ କମର,
ନ ହେଲେ ହଟହଟା ହେବ ଜାଣ ମୂକର ।
ଆଉ ନ ଭୁଲ ଏ ମନଭୁଲଣି ରେ । ୪ ।

---

## ୧୩ । ଆମ ଦେଶ

(ଗଜଲ୍—କବାଲ୍)

ଆମ ଦେଶ ସୁନା ଦେଶ ଆମେ ମରୁଁ ଭୋକରେ,
ଦାନା ପାଇଁ କନା ପାଇଁ ଗଞ୍ଜି ହେଉଁ ଦୁଃଖରେ ।
ସମ୍ପଦ ଗୁଡ଼ିଏ ଭରି ଆମ ଦେଶରେ,
ଜଳକା ହୋଇ ଗୁହିଁ ରହୁଥାଉଁ ପାଣଟେ,
ପରକୁ ଯେତେ ଦୋଷ ଦେଇ ଖାଲ୍ ମିଛରେ
ପଛଧୁଆଁ ଦେଇ ଲୁଚି ରହୁ ଯାଉଁ ବେଳରେ । ୧ ।
କରମ ଦୋଷ କହି ନିଜ ମନ ଭୁଲାଉଁ,
ମରମ କଥାଟିକ ଜାଣି ଜାଣି ଘୋଡ଼ାଉଁ,
ଖଟିବା ଡରେ ହଟି ଯାଇ କିଛୁ ନ ପାଉଁ ।
ସବୁ ଦୁଃଖ ଦଶା ନିଜେ ଭେଜୁଁ ନିଜ ହାତରେ । ୨ ।

ନ ଖାଉଁ ଯେବେ ବନ୍ଧୁ
ଅନାଉଁ ପର କେହୁ
ଉଦରଜ୍ୱାଳା କହୁ କାଏ ନେଇ
ଭଲି ଭଲି ସିନା ଖାଲି ନାଶ ହେବୁ

---

## ୧୪ । ଆଳସ୍ୟ

(ଗଜଲ୍-ଖେମଟା)

ଯେତେ ଯେତେ କାଳ ଖାଲି ଅଳସେ କାଟ ଦିନରେ,
କେତେ ମୂଲ୍ୟ ସେତକର ଭଲ କି କେବେ ମନରେ ।
ସେତକ ବେଳ ଯେବେ ନ ବସି କାମେ ଲାଗ,
ଅପଣା ହୀନଦଶା ସୁମର ଅପେ ଜାଗ,
ପଢ଼ୁଛ ପଛ ହୋଇ ବସିବ ମାଡ଼ି ଅଗ,
ଫେରିଯିବ ସବୁ ଦଶା ସଜରେ,
ଭରିଯିବ କେତେ ଧନ ରତନ ଆମ ବାସରେ । ୧ ।
ଭୁଞ୍ଜାକୁ ଯେତେ ଭଲ ହେଲେ ମନ ଭିତରେ,
ନ ଲାଗ ଯେତେଦିନ ନିଜେ ନିଜ କାମରେ,
ନ ଛାଡ଼ ଅଳସ୍ୟ, ନ ଲାଗ କାମରେ,
ଦିନୁ ଦିନ ଦୁଃଖଦଶା ବଢ଼ିବ ଆମ ଦେଶରେ । ୨ ।
ସୁବର୍ଣ୍ଣପ୍ରସବିନୀ ଏହି ସୁବର୍ଣ୍ଣଭୂମେ,
ଜନମି ଯେବେ ହେବ କରମହୀନ ତୁମେ,
ଗୁହାରି କେ ଶୁଣିବ ? କାହାପାଶେ କହିବ ?
ଭଲି ଭଲି ସିନା ମନ ତାପରେ,
ଜାଳି ହେଉଥିବ କାଳକାଳକୁ ନିଜ ଦୋଷରେ । ୩ ।

ସଙ୍ଗୀତ ସଙ୍ଗୀତ

ଦେନକୁ ଫଳ ନାହିଁ ଗୃହରେ,
ଅନ ଜାମ ନାହିଁ ଦେଶରେ,
ଦେଖି ଦେଖି ସାଧର ଛୁଣ୍ଡରେ,
ଭଲ ଗୀତରେ କାମ ତ ତମ ହାତରେ ।

ଏଭଳି ୧

ବେଳହୁଁ

## ୧୪ । କଥା ଓ କାମ

(ରାଗ—ଶ୍ରେଣି)

କିଛି ନ କର ଛୁଛାକୁ ଦେଶ ଦେଶ
ଯେତେ ଭଜଦେଲେ କଥାରେ,
ଦେଶ ଦୁଃଖ ତଳେ ହେଲେ ନ ଘୁଞ୍ଚିବ
ନାଚ ନାଚ ଯିବ ବୃଥାରେ;
କର୍ମ ଯୁଗରେ,
କରୁଥିବ ଯାହା କର୍ମ ରେ,
ଲଭ ତା ଫଳ ନ ହେବ ବିଫଳ
କର୍ମଫଳ ଦିଅ ଅଗରେ । ୧ ।

ନିଜେ ନ କର ପରକୁ ଉପଦେଶ
ସବୁକାଳେ ଏହା ସରଳ,
ସରଳକୁ ଅଗେ ଅତୋଷ କପାଇଁ
ପରପାଇଁ ଏତେ ବିକଳ ?
କିସ ଦେଖାଇ,
ପରନେଇ ଦେବ ଭୁଲାଇ
ଶ୍ରମ ଛୁଟିଯିବ କଥା ହଟିଯିବ
ନିରାକାର କର୍ମ ବୁଝାଇ ।

Printed by P. Kar, U. S. Press, Cuttack—29-7-40—1000